








# ଉତ୍କଳୀୟ ନୌବାଣିଜ୍ୟ ଓ ଦକ୍ଷିଣ ପୂର୍ବ ଏସୀୟ ଗବେଷଣା ପ୍ରତିଷ୍ଠାନ, ଭୁବନେଶ୍ୱର

ସଂସ୍କୃତି ବିଭାଗ

ପ୍ରାଚୀନ କଳିଙ୍ଗର ଅଧିବାସୀମାନଙ୍କର ନୌବାଣିଜ୍ୟ ଅତ୍ୟନ୍ତ ଗୌରବାବହ ଥିଲା । କଳିଙ୍ଗର ସାଧବମାନେ ବାଣିଜ୍ୟ ବ୍ୟବସାୟରେ ପାରଙ୍ଗମ ଥିଲେ ବୋଲି ବହୁ ଐତିହାସିକ, ଗବେଷକ, ପରିବ୍ରାଜକ ସେମାନଙ୍କର ପୁସ୍ତକ ଓ ଭ୍ରମଣ କାହାଣୀ ଗୁଡିକରେ ଲିପିବଦ୍ଧ କରିଯାଇଛନ୍ତି । ପ୍ରାଚୀନ ଉତ୍କଳର ଧର୍ମ, ସଂସ୍କୃତି ଓ ନୌବାଣିଜ୍ୟର ପରାକାଷ୍ଠା ସୁଦୂର ସିଂହଳ, ମାଳୟ, ବାଲି, ଜାଭା, ସୁମାତ୍ରା ଆଦି ଦ୍ୱୀପ ଗୁଡିକରେ ଏବେ ମଧ୍ୟ ଉପଲବଧି ହୋଇଥାଏ । କଳିଙ୍ଗ/ ଉତ୍କଳ ଅଧିବାସୀ ସମଗ୍ର ଦକ୍ଷିଣ ପୂର୍ବ ଏସିଆରେ ନୌବାଣିଜ୍ୟର ଜୈତ୍ରଧ୍ୱଜ ଉଡାଇଥିଲେ । ଏହାର ପ୍ରମାଣ ବିଭିନ୍ନ ଐତିହାସିକ ବିବରଣୀ ଓ ପରିବ୍ରାଜକ ହୁଏନ୍‌ସାଂ ଓ ଫାହିୟାନଙ୍କ ଭ୍ରମଣ କାହାଣୀ ରୁ ସୂଚିତ ହୁଏ । ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀ ଠାରୁ ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ କଳିଙ୍ଗ/ଉତ୍କଳର ନୌବାଣିଜ୍ୟର ପ୍ରସାର ହୋଇଥିଲା ବୋଲି ଐତିହାସିକ ମାନେ ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି ।

କଳିଙ୍ଗର ଏହି ପ୍ରାଚୀନ ନୌବାଣିଜ୍ୟ ପରମ୍ପରା ସମ୍ବନ୍ଧରେ ଜ୍ଞାନ ଅର୍ଜନ, ଉଚ୍ଚତର ଗବେଷଣା ଓ ଗଭୀର ଅନୁଧ୍ୟାନ ଉଦ୍ଦେଶ୍ୟରେ ଓଡିଶା ସଂସ୍କୃତି ବିଭାଗ ଅଧୀନରେ ''ଉତ୍କଳୀୟ ନୌବାଣିଜ୍ୟ ଓ ଦକ୍ଷିଣ-ପୂର୍ବ ଏସୀୟ ଗବେଷଣା'' ନାମରେ ଏକ ପ୍ରତିଷ୍ଠାନ ମୁଖ୍ୟ ମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ ଗଠନ କରାଯାଇଛି । ଏହି ପ୍ରତିଷ୍ଠାନ ମାଧ୍ୟମରେ କଳିଙ୍ଗ/ଉତ୍କଳର ପ୍ରାଚୀନ ଓ ମଧ୍ୟକାଳୀନ ବନ୍ଦରଗୁଡିକର ସର୍ବେକ୍ଷଣ ଓ ପତ୍ନତାତ୍ତ୍ୱିକ ଖନନ, ଜଳମଗ୍ନ ହୋଇଥିବା ସାମୁଦ୍ରିକ ପୋତ ଗୁଡ଼ିକର ଧ୍ୱଂସାବଶେଷକୁ ନିରୀକ୍ଷଣ କରି ସେଥିରେ ବାଣିଜ୍ୟିକ ସାମଗ୍ରୀକୁ ଉଦ୍ଧାର, ବଙ୍ଗୋପ ସାଗରରେ ପ୍ରାଚୀନ ବାଣିଜ୍ୟ ପଥକୁ ନିରୂପଣ କରିବା ନିମନ୍ତେ ସାମୁଦ୍ରିକ ବିଜ୍ଞାନ ସମ୍ବନ୍ଧୀୟ ଅଧ୍ୟୟନ , ପୂର୍ବ ଭାରତୀୟ ଉପକୂଳ ଅଞ୍ଚଳର ନୌବାଣିଜ୍ୟ ଉପରେ ଲିଖିତ ଓ ମୌଖିକ କିମ୍ବଦନ୍ତୀ ଉପରେ ଅଧ୍ୟୟନ, କଳିଙ୍ଗ/ଉତ୍କଳର କଳା ଓ ଭାସ୍କର୍ଯ୍ୟ ସହ ଦକ୍ଷିଣ-ପୂର୍ବ ଏସିଆର ବୌଦ୍ଧ କଳା ଓ ଭାସ୍କର୍ଯ୍ୟ ସହ ତୁଳନାତ୍ମକ ଅଧ୍ୟୟନ , ପୂର୍ବ ଭାରତୀୟ ଓ ଦକ୍ଷିଣ-ପୂର୍ବ ଏସୀୟ ବୟନ ଶିଳ୍ପ ଉପରେ ଅଧ୍ୟୟନ ଓ ଓଡିଶାର ''ବାନ୍ଧ '' କଳା ଉପରେ ଗୁରୁତ୍ୱ ଆରୋପ ଏବଂ ଶାସ୍ତ୍ରୀୟ ନୃତ୍ୟ, ଲୋକପ୍ରିୟ ନାଟକ ଓ ଛାୟା କଣ୍ଢେଇର ନାଚ ସହିତ ଦକ୍ଷିଣ ପୂର୍ବ ଏସୀୟ ନାଚ ଉପରେ ତୁଳନାତ୍ମକ ଅଧ୍ୟୟନ ଏହି ପ୍ରତିଷ୍ଠାନର ମୂଳ ଲକ୍ଷ୍ୟ ।

ଏହି ପ୍ରତିଷ୍ଠାନ ଗଠନ ହେବା ପରଠାରୁ ଓଡିଶାର ଉପକୂଳ ଅଞ୍ଚଳର ବାଲେଶ୍ୱର ଜିଲ୍ଲାର ସୁବର୍ଣ୍ଣ ରେଖା ନଦୀ ମୁହାଣଠାରୁ ଆରମ୍ଭକରି ଦକ୍ଷିଣରେ ମହେନ୍ଦ୍ର ତନୟା ନଦୀ ମୁହାଣ ପର୍ଯ୍ୟନ୍ତ ସର୍ବେକ୍ଷଣ କରାଯାଇଛି । ତନ୍ମଧ୍ୟରୁ ବାଲେଶ୍ୱର, ଧାମରା, ଚାନ୍ଦବାଲି, ହରିଶପୁର, ମରିଚପୁର,

ହରିହରପୁର, ବୋଇତ କୁଦ, କନଗର (କୋଣାର୍କ ), ମାଣିକ ପାଟଣା, ପାଲୁର, ଗଞ୍ଜା ଓ ସୋନାପୁର ଇତ୍ୟାଦି ପ୍ରାଚୀନ ଏବଂ ମଧ୍ୟ କାଳୀନ ବନ୍ଦର ମାନଙ୍କର ଅନୁସନ୍ଧାନ କରାଯାଉଛି । ପର୍ତ୍ତୁଗୀଜ ସମୟର ପିପିଲି ବନ୍ଦର ଓ ମୋଗଲ ରାଜତ୍ୱ ସମୟର ଶାହା ବନ୍ଦରକୁ ଚିହ୍ନିତ କରିବାକୁ ପ୍ରୟାସ କରାଯାଇଛି ।

ଉପର ବର୍ଣ୍ଣିତ ବନ୍ଦର ଗୁଡ଼ିକରେ ପ୍ରାରମ୍ଭିକ ସର୍ବେକ୍ଷଣ ପରେ ପରେ ପ୍ରଥମେ ପୁରୀ ଜିଲ୍ଲାର ମାଣିକ ପାଟଣା ପରେ ପ୍ରତ୍ନତାତ୍ତ୍ୱିକ ଖନନ କାର୍ଯ୍ୟ ଦକ୍ଷିଣ-ପୂର୍ବ ଏସୀୟ ଗବେଷଣା ପ୍ରତିଷ୍ଠାନ ଏବଂ ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗର ମିଳିତ ଆନୁକୂଲ୍ୟରେ ଆରମ୍ଭ କରାଯାଇଛି । ଉକ୍ତ ଖନନରୁ ଉପଲବ୍ଧ ହୋଇଥିବା ସାମଗ୍ରୀ ଗୁଡ଼ିକର ପରୀକ୍ଷା ନିରୀକ୍ଷା ପରେ ଜଣାପଡୁଅଛି ଯେ ମାଣିକ ପାଟଣା ଠାରେ ଅନ୍ତତଃ ଖ୍ରୀଷ୍ଟାବ୍ଦ ପ୍ରଥମ ଶତାବ୍ଦୀରୁ ଆରମ୍ଭ କରି ଉନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଏଠାରେ ଏକ ଆନ୍ତର୍ଜାତୀୟ ପୋତାଶ୍ରୟ କାର୍ଯ୍ୟକ୍ଷମ ଥିଲା । ଉକ୍ତ ଖନନରୁ ଆବିଷ୍କୃତ ସାମଗ୍ରୀ ମାନଙ୍କ ମଧ୍ୟରେ ରୋମ ଦେଶୀୟ ଏମ୍ଫୋରା ଓ ମୃଣ୍ମୟ ପାତ୍ର , ପୁରୀ କୁଶାଣ ମୁଦ୍ରା, ସିଂହଳ ଦେଶୀୟ ତାମ୍ର ମୁଦ୍ରା, ଆରବ ଦେଶୀୟ (ଇରାକ ) ମୃଣୟ ପାତ୍ର,ଚୀନ ଦେଶୀୟ ମୁଦ୍ରା, ସେଲାଡନ ଓ ପୋରସେଲିନ, ଇଣ୍ଡୋନେସିଆର ଟେରାକୋଟା ମୂର୍ତ୍ତି, ଶ୍ୟାମ ଓ କାମ୍ବୋଜ (ଥାଇଲ୍ୟାଣ୍ଡ ଏବଂ କାମ୍ପୁଚିଆ ) ଦେଶୀୟ ମୃଣ୍ମୟ ପାତ୍ର, ବ୍ରହ୍ମଦେଶୀୟ ମୃଣ୍ମୟ ପାତ୍ର, ମୋଗଲ ରାଜତ୍ୱ କାଳୀନ ଆକବର ଓ ଶାହାଆଲାମ୍‌ଙ୍କର ତାମ୍ର ମୁଦ୍ରା, ପର୍ତ୍ତୁଗୀଜ ଏବଂ ଇଷ୍ଟ ଇଣ୍ଡିଆ କମ୍ପାନୀର ମୁଦ୍ରା ଏବଂ ଏକ ପାର୍ଶୀ ଶିଳାଲେଖ ଅନ୍ୟତମ । ସିଂହଳର ଅନୁରାଧା ପୁର, ବାଲିଦ୍ୱୀପର ସେମ୍ବିରାନ ଓ ଭାରତର ଆରିକାମେଡୁ ଏବଂ ମାଣିକ ପାଟଣା ରୁ ମିଳିଥିବା (Rouletted Ware) ର ବୈଜ୍ଞାନିକ ବିଶ୍ଳେଷଣରୁ ଜଣାଯାଏ ଯେ ଏଗୁଡ଼ିକ ପ୍ରାୟ ସମାନ (XRD-Dating) । ଏ ବନ୍ଦରକୁ ହୁଏନ୍‌ସାଂଙ୍କ ବର୍ଣ୍ଣିତ ଚେ-ଲି-ତା-ଲୋ ସହିତ ଚିହ୍ନଟ କରାଯାଇପାରେ କାରଣ ଏଠାରେ ଚୀନ ଦେଶୀୟ ଅନେକ ସାମଗ୍ରୀ ଆବିଷ୍କୃତ ହୋଇଛି ।

ଏହି ପ୍ରତିଷ୍ଠାନ ତରଫରୁ ବାଲେଶ୍ୱର ସହରରେ ଥିବା ଓଲନ୍ଦାଜ ସାହିରେ ମଧ୍ୟ ଏକ ପରୀକ୍ଷା ମୂଳକ ଖନନ କରାଯାଇଛି । ଉକ୍ତ ଖନନ ଦ୍ୱାରା ମାଟି ତଳୁ ଏକ ବିଦେଶୀ ଡଙ୍ଗାର ଅବଶେଷ ଆବିଷ୍କୃତ ହୋଇଛି ଏବଂ ଏହାକୁ ୟୁରୋପ ମହାଦେଶରେ ଥିବା ହଲାଣ୍ଡର ହୋଇପାରେ ବୋଲି ମନେ କରାଯାଇଛି । ଓଡ଼ିଶାର ବାଲେଶ୍ୱର ସହରର ବୁଢ଼ାବଳଙ୍ଗ ନଦୀ ଉପକୂଳରେ ଯେ ଏକ ମହାନ ବନ୍ଦର ଗଢ଼ିଉଠିଥିଲା, ଏଥିରେ କୌଣସି ଦ୍ୱୀମତ ନାହିଁ । ଏଠାରେ ଥିବା ଡିନାମାର୍ ଡିଙ୍ଗା,

ଫରାସୀ ଡିଙ୍ଗା, ଫିରିଙ୍ଗି ଡିଙ୍ଗା ଓଲନ୍ଦାଜ ନାଳା ଏବଂ ପର୍ତ୍ତୁଗୀଜ ତଥା ଅନ୍ୟ ୟୁରୋପୀୟ ମାନଙ୍କର ବିରାଟ ବିରାଟ କବର ଏହାର ମୂକସାକ୍ଷୀ

ପ୍ରତିଷ୍ଠାନର ଅନ୍ୟ ଏକ ଅବଦାନ ହେଉଛି ପୁରାତନ ପାଲୁର ବନ୍ଦର ଖନନ ଏବଂ ଚିହ୍ନଟ କରିବା । ଖ୍ରୀଷ୍ଟପର ଦ୍ଵିତୀୟ ଶତାବ୍ଦୀରେ ପ୍ରଖ୍ୟାତ ଗ୍ରୀକ ଦେଶୀୟ ଭୁଗୋଳ ବିତ୍ ଟୋଲେମୀ '' ପାଲୁର ବନ୍ଦର '' ବାବଦରେ ତାଙ୍କ '' ଭୁଗୋଳ ''ରେ ଉଲେଖ କରିଛନ୍ତି । ତାଙ୍କ ବର୍ଣ୍ଣନା ଅନୁଯାୟୀ ଦକ୍ଷିଣ-ପୂର୍ବ ଏସିଆକୁ ଯେତେ ବୋଇତ ଯାଉଥିଲା, ତାହା ପାଲୁର ବନ୍ଦରଠାରୁ ହିଁ ଯାଉଥିଲା । ପାଲୁର ବନ୍ଦର କୁ ଚିହ୍ନଟ କରିବା ପାଇଁ ଅନେକ ଦିନରୁ ଚେଷ୍ଟା ଚାଲିଥିଲା ,କିନ୍ତୁ ଏହାର ସଠିକ ସ୍ଥାନ ନିରୂପଣ ହୋଇପାରୁ ନଥିଲା, କିନ୍ତୁ ଏ ଖନନ ଦ୍ଵାରା ପୁରାତନ ପାଲୁର ଚିହ୍ନଟ ହେବା ସଙ୍ଗେ ସଙ୍ଗେ ସେ ସମୟର ବତୀଖୁଣ୍ଟ ମଧ୍ୟ ପାଲୁର ପାହାଡର ଶୀର୍ଷ ଦେଶରୁ ଆବିଷ୍କୃତ ହୋଇଯାଇଛି ।

ଏ ଖନନ ପାଲୁର ପାହାଡ ନିକଟବର୍ତ୍ତୀ ମଧୁସୂଦନ ପୁର ମୌଜାରେ ସମ୍ପାଦିତ ହୋଇଛି । ଏଠାରୁ ନାଲି ଓ ପାଉଁଶିଆ ରଙ୍ଗର ମୃଣ୍ମୟ ପାତ୍ର, ଟେରାକୋଟା ବିଦ୍ ଖରୋଷ୍ଟି ଲିପିରେ ଲିଖିତ ଏକ ମୃଣ୍ମୟ ପାତ୍ର ର ଅଂଶ ମାନ ଆବିଷ୍କୃତ ହୋଇଛି । ଏହା ପାଖରେ ଥିବା ଆଉ ଏକ କୁଦରୁ ପ୍ରଚୁର ପରିମାଣର (N.B.P.) ମୃଣ୍ମୟ ପାତ୍ର, (Dis-on-stand) ଓ ବଡ ବଡ଼ ପାତ୍ର (Jar)ର ଅଂଶମାନ ମିଳୁଛି, ଯାହାକି ଥାଇଲାଣ୍ଡର (Ban-Dan-Ta-Phet) ଖନନରୁ ଆବିଷ୍କୃତ ସାମଗ୍ରୀ ସହିତ ତୁଳନୀୟ । ତେଣୁ ପାଲୁର ବନ୍ଦରର ଦକ୍ଷିଣ-ପୂର୍ବ ଏସୀଆ ସହିତ ବାଣିଜ୍ୟିକ ସମ୍ପର୍କ ଥିବାର ପ୍ରତ୍ୟକ୍ଷ ପ୍ରମାଣ ମିଳୁଛି ।

ଅନୁଷ୍ଠାନର ବର୍ତ୍ତମାନ ସୁଦ୍ଧା ସବୁଠୁ ସଫଳ କାର୍ଯ୍ୟ ହେଲା ଲାଙ୍ଗୁଡ଼ି ପାହାଡ ର ଖନନ, ଏବଂ ଏହାକୁ ହୁ-ଏନ୍-ସାଂ ଙ୍କ ବର୍ଣ୍ଣୀତ '' ପୁଷ୍ପଗିରି ବିହାର '' ଭାବରେ ଚିହ୍ନିତ କରିବା । ପ୍ରତିଷ୍ଠାନ ର ମୂଳ ଲକ୍ଷ୍ୟ ଅନୁଯାୟୀ ଆମେ ପ୍ରଥମେ ଲାଙ୍ଗୁଡ ପାହାଡର ବୌଦ୍ଧ ମୂର୍ତ୍ତୀ, କଳା ଓ ଭାସ୍କର୍ଯ୍ୟ ଗୁଡ଼ିକର ତୁଳନାତ୍ମକ ଗବେଷଣା ପାଇଁ ଦକ୍ଷିଣ ପୂର୍ବ ଏସିଆର ବୌଦ୍ଧ କଳା ଭାସ୍କର୍ଯ୍ୟ ତଥା ଇଣ୍ଡୋନେସିଆର ବୋରୋବଦୁର ଠାରେ ଥିବା ବୌଦ୍ଧ କଳା ସହିତ ସ୍ଥିରିକୃତ କରିଥିଲୁ , କିନ୍ତୁ ଖନନର ଆବିଷ୍କୃତ ବିଭିନ୍ନ ସାମଗ୍ରୀ ଗୁଡିକର ପରୀକ୍ଷା ନିରୀକ୍ଷା ଏବଂ ଶିଳାଲେଖ ଗୁଡିକର ପାଠୋଦ୍ଧାର ପରେ ଜଣା ପଡିଲା ଯେ , ଏହା ହେଉଛି ହୁ-ଏନ୍-ସାଂ ଙ୍କ ବର୍ଣ୍ଣୀତ ପ୍ରସିଦ୍ଧି ''ପୁଷ୍ପଗିରି ବିହାର '' ।

ଲାଙ୍ଗୁଡ଼ି ପାହାଡ ଯାଜପୁରଜିଲ୍ଲାର ଧର୍ମଶାଳା ବ୍ଲକ ଅନ୍ତର୍ଗତ ସାଲେପୁର ଗ୍ରାମରେ ଅବସ୍ଥିତ । ଲାଙ୍ଗୁଡି ପାହାଡ ଏବଂ ଏହାର ସନ୍ନିକଟ ପାହାଡ ମାନଙ୍କରୁ ସର୍ବେକ୍ଷଣ ପରେ ଆମେ ପ୍ରାୟ ୪୦ ଗୋଟି ପ୍ରସ୍ତର ଖୋଦିତ ଗୁମ୍ଫା ଏବଂ ତତ୍ ସଙ୍ଗେ ସଙ୍ଗେ ବୌଦ୍ଧ ସ୍ତୁପ ଏବଂ ବିହାର ମାନଙ୍କର ଅବଶେଷ ଆବିଷ୍କୃତ କରିଅଛୁ । କାୟାମା ପାହାଡର ଏକ ଶିଳାଲେଖରୁ '' ଶ୍ରୀ ଶ୍ରୀ ବୁଦ୍ଧଃ '' ଏବଂ ''ଅଶୋକେନ '' ଶବ୍ଦ ଥିବାର ଜାଣିପାରିଛୁ ଯଦ୍ୱାର କି ଭଗବାନ ବୁଦ୍ଧ କିମ୍ବା ସମ୍ରାଟ ଅଶୋକ ଏ ସ୍ଥାନ ପ୍ରତି ଜଡିତ ଥିବାର ସମ୍ଭାବନା କରାଯାଏ । ଏହି ପାହାଡର ଦକ୍ଷିଣ ଦିଗରେ ଏକ ବିରାଟ ଦୁର୍ଗର ଅବଶେଷ ଥିବାର ମଧ୍ୟ ଆମେ ସର୍ବେକ୍ଷଣ ଦ୍ୱାରା ଜାଣିପାରିଅଛୁ । ଏହି ଦୁର୍ଗ ପ୍ରାଚୀନ କଳିଙ୍ଗର ରାଜଧାନୀ ''ଦନ୍ତପୁର '' ହୋଇଥିବାର ଯଥେଷ୍ଟ ସମ୍ଭାବନା ଅଛି । ଆବଶ୍ୟକୀୟ ଖନନ ପରେ ଅଧିକ ତଥ୍ୟ ଉପଲବ୍ଧ ହୋଇପାରିବ ।

ଲାଙ୍ଗୁଡି ପାହାଡର ଖନନରୁ ଆବିଷ୍କୃତ ବୁଦ୍ଧ ମୂର୍ତ୍ତି ଗୁଡିକ ଏବଂ ଟେରାକୋଟା ନିର୍ମିତ ବୁଦ୍ଧ ମୂର୍ତ୍ତି ସାରା ଓଡିଶାରେ ବିରଳ । ପୁନଶ୍ଚ ଏଠାରୁ ଆବିଷ୍କୃତ ଶିଳାଲେଖ ଗୁଡିକରୁ ପୁଷ୍ପଗିରି ନାମ ସମ୍ବନ୍ଧୀୟ ଲେଖା ଯଥା:- ''ପୁଷ୍ପସଭାରଗିରୟ '' , ''ପୁଷ୍ପଗିରି କାନନ '' '' ପୁଷ୍ପସିରି ବିହାରିୟ '' , ପୁଷ୍ପଗିରିହ '' ''ପିଷ୍ପସିରିଗିରି ବିହାରେ '' ଇତ୍ୟାଦି ଜଣାପଡୁଅଛି । ଅଦ୍ୟାବଧି ଲାଙ୍ଗୁଡି ପାହାଡର ଏକ ଦଶମାଂସ ଅଞ୍ଚଳ ଖନନ କରାଯାଇଅଛି । ସମ୍ପୂର୍ଣ୍ଣ ଖନନ କରାଗଲେ ଆହୁରି ନୂତନ ଐତିହାସିକ ତଥ୍ୟ ଲୋକ ଲୋଚନକୁ ଆସି ପାରିବ ।

ଉକ୍ତ ଅନୁଷ୍ଠାନ ଚିଲିକା ଏବଂ ତତ୍ ସନ୍ନିକଟ ଗ୍ରାମ ଗୁଡିକର ସର୍ବେକ୍ଷଣ ସମୟରେ କେତେକ ବିରଳ ତାଳପତ୍ର ପୋଥି ସଂଗ୍ରହ କରିଅଛି । ଏହି ପୋଥିଗୁଡିକରେ ପୁରାତନ ଡଙ୍ଗା ଗୁଡିକର ଗଠନ ଶୈଳୀ , ତଥା ରେଖା ଚିତ୍ରଗୁଡିକର ବର୍ଣ୍ଣନା କରାଯାଇଛି । ସମଗ୍ର ଭାରତ ବର୍ଷରେ (କେବଳ ଯୁକ୍ତି କଳ୍ପତରୁକୁ ଛାଡି ) ଏପରି ପୋଥି ଆବିଷ୍କୃତ ହୋଇନାହିଁ । ଏହାର ପ୍ରକାଶନ ଜାତୀୟ ଅଭିଲେଖା ଗାରର ସହାୟତାରେ ଖୁବ୍ ଶୀଘ୍ର ହେବ ।

ସମ୍ପାଦକ....

Situated on the shore of Bay Bengal , ancient Kalinga once comprised the costal regions of modern Orissa and the adjacent costal districts of Andhra Pradesh and Bengal. The unique environment of Orissa, with the blue ocean by its side gave an excellent opportunity to its inhabitants for transoceanic commerce. The great Sailors of Orissa ( Kalinga ) in spite of various dangers crossed the ocean and reached the distant lands. They had complete control over the Eastern Sea (Mohodadhi ). Kalinga was major maritime power of India and its king, according to Kalidasa was not only the Lord of Mahendra mountain but also the Lord of Mohodadhi. In ancient time the direction of maritime trade was towards East. South- East Asia, with its valuable deposits of gold, tin, spices, scented wood etc., was a veritable eldorado where great wealth might be acquired with ease. South-East Asia appears as Suvarnadvipa or Suvarnabhumi. The Sailors of Kalinga reached South-East-Asia in very early times. The importance of Kalingan port of Palura for voyages to South-East-Asia is attested by Ptolemy in 2nd century A.D. The Chinese pilgrim Huen Tsang who visited Orissa in 7th Century A.D. mentions an important port called Che-li-ta-lo. Trade activities were known to have been carried on through the international ports of Orissa till the medieval period.

In order to establish the cultural and commercial linkage of ancient Kalinga with the South-East-Asian countries, the Orissan Institute of Maritime and South East Asian Studies has been formed under the chairmanship of hob'ble Chief Minister, Orissa. To achieve these research aims the Institute is taking up the schemes to identify, and to exavate ancient and medieval port sites, to locate and excavate shipwrecks and their trade goods, to undertake oceanographic study, to undertake comprehensive survey of literary and epigraphical sources with regards sea trade and sea goods, to undertake study of written and floklore on maritime activities, to analyse art and architecture of Orissa and comparing with its South-East-Asian art and architecture

and to analyse comparative study of South-East Asian textile and the 'BANDHA' or 'IKAT' weaving of Orissa.

After formation of the Institute, intensive survey and explorations of ancient and medieval port sites of coastal Orissa have been taken up from the mouth of Survanarekha in the district of Balasore to the mouth of Mahendra Tanaya in the district of Ganjam in the South - Orissa. The ports of Balasore, Dhamra, Chandbali, Harishpur, Marichpur, Hariharapur, Boit Kud, Kannagara (Konark) Manikpatna, Palur, Ganja and Sonapur etc. were surveyed. The extinguished Pipli on the mouth of Survanarekha river and Sahah-Bandar of the Protuguse and Moughal period respectively also surveyed.

After through survey and exploration, the Institute decided to excavate Manikapatna in the district of Puri in collaboration with the Orissa State Archeology. The result of this excavation are more than a success as it gives clear indications of a flourishing international port town in this coastal belt at Manikapatna. The yielding of Roman amphorae and rouletted ware, Puri-Kusana copper coin, Khorostri inscriptions, Ceylonese coin, Chinese coin, celadon and porselin, Indonesian terracotta, Arabian (Iraq) pottery, Thailand (Shyam), Cambodia and Vietnam pottery, Burmese pottery, Moughal period copper coins, Portuguese and East-India Company bottles and coins, and a Persian inscriptions at Manikatpatna, does not leave any doubt that it was a international port. The appearance of Chinese Kaolin pottery, celadon, porselin and coins and the rich harvest of other imported pottery, it is presumed that the town must have been an important establishment of both Kalinga and foreign trading communities. Professor of Chinese studies of the J.N.U. Dr. H.P. Ray has examined the Chinese antiquities of Manikapatna and has rightly identified the place as Chilikatal-Che-li-ta-lo or Zhejidalo of Hieun-Tsang. So the long standing issue over the identification of Che-li-ta-lo port of Hieun-Tsang's period is solved for ever.

The Institute has taken up trial excavation at Olandaz Sahi in Balasore town and could unearth the remains of shipwreck of a foreign ship which is presumed to be of Holland's ship. The appearance of various mounds namely Dinamar Dinga, Farasi Dinga, Firingi Dinga, Olandaz Nullah, and the large numbers of Portuguese and Europeans burials at old Balasore town does not leave any doubt that it was an late mediaeval port town.

One of the most important work of the Institute is to identify the ancient port town of Palura. Ptolemy, the Greek Geographer in the 2nd century A.D. refers to a port name Palura. According to him the point of departure (apheterion) for ships bound for Khryse (land of South-East-Asia) was "immediately to the South of a town of the territory on the Gangetic gulf called Palura" The Periplulus Tex Exo Thalasses also mentions Palura as the point of departure. Till our excavation near Prayagi in Ganjam district, Palura was not properly identified. We have surveyed extensively from the mouth of Risikulya upto the village of Prayagi on the coast and examined the antiquities found from the villages of Palibandha, Purunabandha, Bichhanapalli, Suryanagar, Kondaput, Gokhorkuda, Kantigadia, Barapalli, Bateswara and Prayagi. In and around Palura mountain we have noticed number of N.B.P. shreds and other associated materials of Pre-Christian Era. On the top of the hill we could discover the ancient light house made of monolithic stone, which is worshipped as Sikhareswara Siva Linga. In another site of Palur canal, from the excavated site, large numbers of N.B.P. shreds, red ware, dis-on-stand, and jars were discovered which could be compaired with the materials found from Ban-Dan-Ta-Phet excavation in Thailand. Among the other excavated materials are Khorostri inscription deciphered by Prof. B.N. Mukharjee of Calcutta University as "Sahapatra" "Sadha" and "Se" of 2nd century A.D. We have mentioned earlier that Palur was an important port in 2nd century A.D. and the finding of Khorostri inscription of 2nd century., certainly substantiate the view of the existence of the port city

in that period., Khorostri inscriptions of Palur can be compaired with the Khorostri writings of Anuradhapuram (Ceylon), and at Sembiran (Bali in Indonesia) excavation. Hence the maritime contact of Palur port with South-East-Asian countries have been ascertained from this excavation.

One of the most important activities of the Orissan Institute of Maritime and South East Asian Studies is the excavation of a Buddhist site at Langudi Hill and its identifications with the Pu-sei-po-ki-li (Puspagiri) monastery of Hieun-Tsang time. The primary objectives of this excavation is to proof the link of ancient Orissa's Buddhism with that of Buddhism in South-East-Asia. Vis-a-vis-art and architecture.

It is said that Buddhism reached South-East-Asia in the early part of Christian era. Even in 413-414 A.D. Fihian writes that hundreds of Brahmins and Buddhist of Kalinga country frequently travelled China through Java. Therefore in order to make a comparative study, we have taken up, survey, explorations and excavations of Buddhist sites in and around Langudi Hill. area of Jajpur district. From the explorations and excavated materials we have not only established the Buddhist links of ancient Orissa with its counter parts in South-East-Asia, but also could discovered the greatest monastery "Pu-sei-po-ki-li" (Puspagiri) of Hieun-Tangs period and 40 nos of rock-cut caves and 7 Buddhist monasteries.

The Institute, while surveying the ancient port sites in and around Chilika area has collected rare palm-leaf manuscripts that contains the designs of boat making, and detailed descriptions on the construction of river boats and seagoing vessals. These palm leaf manuscript are Ratnakar-Vihar, Annava Vihara and Kosali Danga. This type of manuscripts are no where found in India (except Yukti Kalpataru). The Institute is publishing it very soon with the financial help of National Archives of India.

**Secretary.**

ପ୍ରଚ୍ଛଦ ପଟର ବିବରଣୀ : (୧) ଚୀନ ଦେଶୀୟ ତାମ୍ର ମୁଦ୍ରା।

(୨) ସିଂହଳ ଦେଶୀୟ ତାମ୍ର ମୁଦ୍ରା।